ଶ୍ରୀମତୀ ସଞ୍ଚିତାରାଣୀ ବେହେରାଙ୍କ

# ଲୁହର ନୈବେଦ୍ୟ



ସ୍ୱସ୍ତି ପ୍ରକାଶନୀ
ଶୀତଳା ମନ୍ଦିର, ସେକ୍ଟର - ୩, ରାଉରକେଲା - ୨

ରଚନା:
ଶ୍ରୀମତୀ ସବତା ରାଣୀ ବେହେରା

ପ୍ରକାଶକ:
ସ୍ୱସ୍ତି ପ୍ରକାଶନୀ

ପ୍ରକାଶ କାଳ:
୧୯୯୧, ଜାନୁଆରୀ

ମୁଦ୍ରଣ:
ମନ୍ଦାକିନୀ ପ୍ରିଣ୍ଟର୍ସ, ଷ୍ଟେସନ୍ ରୋଡ୍,
ରାଉରକେଲା- ୭୬୯୦୧୧

ମୂଲ୍ୟ ୭ଟଙ୍କା

୧୯୩୬ ମସିହା "ଉତ୍କଳ ଦିବସ"ରେ ବଉ ମୋର ଜନ୍ମ ଗ୍ରହଣ କରିଥିଲ ॥ ଅନେକ ସୁଖ ଦୁଃଖ ଭିତରେ ସମଗ୍ର ଜୀବନ କାଳ ସନ୍ତୋଳିତ ହୋଇ, କିଛି ସୁଖ ଦେଖିବା ପୂର୍ବରୁ ବଉ ମୋର ଏଇ ୯୦ ଡିସେମ୍ବର ୨୮ ତାରିଖରେ ଆମ ଭାଇ ଓ ଭଉଣୀ ତଥା ବାପାଙ୍କୁ ଛାଡ଼ି ଏ ମାଟିରୁ ଚାଲିଗଲ ॥



ସେଇ ମୋର ବଉ ସ୍ୱର୍ଗତା ସଞ୍ଜୁକ୍ତା ରାଣୀ ବେହେରା (ଲୁଂଗୀ)ଙ୍କ
ସ୍ମୃତି ଉଦ୍ଦେଶ୍ୟରେ ମୋର ଏଇ "ଲୁହର କେଇ [illegible]"
ବଉଲେ,
କ୍ଷୀରରେ ଧୋଇଲେ [illegible]
ଯେତେ ଯାହା କହି ବୁଝାଇ ବସିଲେ [illegible] ମନକୁ ବୁଝିବ
ତୁ'ତ ଚାଲିଗଲୁ ସେ ଦେଶେ ବଉଲୋ ! ଯେଉଁଠୁ ଫେରିନି କେହି
ହାତ ଠେକି ତୋତେ ଯେତେ ଯାହା ଦେଲେ ନେବାକୁ ଆସିବୁ ନାହିଁ
ହୃଦୟ ନିଗାଡ଼ି ଆତ୍ମା ଚିପୁଡ଼ି ଲୁହ ଆଉ ଲହୁ ଦେଇ
ଲୁହର ନୈବେଦ୍ୟ ବାଢ଼ି ଦେଲି ବଉ ! ତୋର [illegible]
ଯେଉଁ ଦେଶେ ଯାଇଛୁ ଶାନ୍ତିରେ ଥାଆରେ ଆମର ଭକତି ନେ
ଏ ଭବସାଗରୁ ପାରି ହୋଇବାକୁ ଆମକୁ ଆଶିଷ ଦେ

ଇତି

ତୋର ବଉଝିଅ

ଝୁନୀ

## ॥ ମୋର ଅଭିବ୍ୟକ୍ତି ॥

'ଲୁହର ନୈବେଦ୍ୟ' ପାଇଁ
ମୋର କିଛି କହିବାର ନାହିଁ
ମାତୃହରା ଜୀବନରେ କହିବାର ଅବସର କାହିଁ ?
ଅବସର ଖାଲି ଶୂନ୍ୟତାର ଲୁହଲହୁ ଢାଳିଝରିବାର ।
ନିଜକୁ ନିଜେ ସମୁଟି ବଂଚିବାର ପ୍ରତ୍ୟୟ ପାଇବି
"ଲୁହର ନୈବେଦ୍ୟ" ପଢ଼ି ବଉନାହିଁ ବିଶ୍ୱାସ ଆଣିବ
ପଢ଼ୁ ବା ନପଢ଼ୁ କେହି ସେଥିପାଇଁ ନାହିଁ ମୋ ଶୋଚନା
ମୋ ଶୋକ ସନ୍ତପ୍ତ ପ୍ରାଣ ଗାଇଗାଇ ଲଭିବ ସାନ୍ତ୍ୱନା ।
ମୋ କବିତା ଛପା ହେଲେ 'ବଉ' ମୋର ଆଗ୍ରହରେ ପଢ଼େ
ତା ସ୍ମୃତି ତର୍ପଣ ପାଇଁ ଏ ଲୁହର ନୈବେଦ୍ୟ ମୁଁ ବାଢ଼େ
ଏ କବିତା ଲେଖିନି ମୁଁ କବିତ୍ୱ ପାଣ୍ଡିତ୍ୟର ରସ ଝଲକାଇ
ଲେଖି ହୋଇ ଯାଇଛି ଯେ ଆପେ ଆପେ ମୋ ବଉର ମମତ୍ୱ ଝୁରଇ
ମୋ ଜୀବନ କୋରା କାଗଜରେ / ମୋ ଗୁନ୍ତର ରକ୍ତାକ୍ତ ଅକ୍ଷରେ
ଶୋକାକୁଳ ମନ ମୁନେ ଲେଖି ।
ବଉ ପାଇଁ ସ୍ମୃତିର ଗୀତିକା ଗୁମ୍ଫିଅଛି ଏଥି ମୋର ଲୁହର ଧାଡ଼ିରେ
ଲୁହର ପାହାଚ ହୋଇ ମୋ ଜୀବନ ଆଜି ମୋତେ ଏଇ ହାତଠାରେ
ଲୁହର ନୈବେଦ୍ୟ ବାଢ଼ି "ବଉ"କୁ ମୁଁ ଖୋଜୁଥିବି ମନର ମନ୍ଦିରେ
ଥିବା ଯାଏ ଏଇ ଧରଣୀରେ ॥

**ସବିତା ରାଣୀ ବେହେରା**
ମାର୍ଫତ୍/ଡଃ ରମେଶ ଚନ୍ଦ୍ର ବେହେରା
ସହକାରୀ ପ୍ରାଧ୍ୟାପକ
ମେଟାଲର୍ଜି ଡିପାର୍ଟମେଣ୍ଟ
ରିଜିଓନାଲ୍ ଇଂଜିନିୟରିଂ କଲେଜ,
ରାଉରକେଲା-୭୬୯୦୦୮

# ॥ ତୋ ଚିଠି ପାଇଲା ପରେ ॥

ବଉଳେ ! ପାଇଲି ଚିଠି ତୋ ଦେହଟା ଜମା ଭଲ ନାହିଁ
ଲୁ କୁଆଡ଼େ ବିଛଣାରୁ ଉଠୁନାହୁଁ, ପାଣି ବି ଛୁଉଁନୁ
ଆଜିତ ପାଇଲି ଚିଠି ମୋଟା ମୋଟି ଆଠଦିନ ତଳର ଖବର
କେତେ କଣ ଭାବନାର ଆଶଙ୍କାରେ ମନ ମୋ ଅସ୍ଥିର
ସେ ଚିଠି ପାଇଲାବେଳକୁ ଛୁଟି ପଡ଼େ ଗୋଡ଼ହାତ
ମୁଣ୍ଡଟା ଘୂରୁଛି ମୋର ଏପରିକି ସବୁବିଷ ଏ ଜୀବନ ଲୁଛି
ଘଣ୍ଟାଟିଏ ଯୁଗପରି ଜୀବନ ଯାଉଛି ଛୁଡ଼ି
ସତେକି ଏ ମୁଣ୍ଡ ପରେ ଖଣ୍ଡ ଖଣ୍ଡ ଖସିପଡ଼େ ଗ୍ରହ ॥
ତୋ ରୁଗ୍ଣ ବିଛଣା ପାଖେ ମଥା ପୋତି ବାପାମୋର
ଆକାଶକୁ ଚାହିଁଥିବେ ଭାଗ୍ୟକୁ ଦରାଣ୍ଡୁଥିବେ
ମାସ ଶେଷ ଶୂନ୍ୟତାର ମୁଠାମୁଠା ଲୁହେ ଭିଜିଭିଜି
କାପରି ଦେଖିବେ ସ୍ୱପ୍ନ ଭେଲ୍ଲୋରର ହସ୍ପିଟାଲ
ତୁ'ତ ମୋତେ ଠେଲିଦେଲୁ ଯୋଜନ ଯୋଜନ ଦୂର
ମୋ ବେକରେ ବାନ୍ଧିଦେଇ ଜଞ୍ଜାଳ ଜଞ୍ଜିର
ଇଚ୍ଛାକଲେ ଘରୁ କେବେ ବାହାରି ମୁଁ ଯାଇପାରୁନାହିଁ
ସ୍ତ୍ରୀଙ୍କ ଦେହ ଜମା ଭଲନାହିଁ । ସାରାଦିନ ଛଟପଟ
ଅନିଦ୍ରା ଓ ଯନ୍ତ୍ରଣାକୁ ପିଠେଇ ପିଠେଇ
ମୁଁ ଚାଲିଛି ଗଧପରି ବେଦନାର ଗଣ୍ଠିଲିକୁ ବୋହି
ଧନବନ୍ତ ହସ୍ପିଟାଲ, ସହରର ବଜାରେ ପୁଣି ନିହାତି ଏକଲା
ମାର୍କେଟିଂ ପିଲାଙ୍କର ଚାଠପଡ଼ା-ଦେହ ପା'ଦୁନିଆଁ ଜଞ୍ଜାଳ
ମୁଁ ଧାଉଁଛି ଜୋକପରି ଘୁଷୁରି ଘୁଷୁରି ସିନା
ଅକଥ୍ୟ ଏ ସମସ୍ୟାର ସକଳ ଝମେଲି
ଯଦିବା ପୃଥିବୀ ଗୋଲ —
ସେଇଠି ପହଞ୍ଚୁଥାନ୍ତି ଯେଉଁଠୁ ବାହାରିଥିଲି ନିର୍ଦ୍ଦିଷ୍ଟ ବିନ୍ଦୁରେ
ଏ କେମିତି କଥା ବଉ ।
ଚିଠିକୁ ପଢ଼ିଲି ଆସି ଭିନ୍ନ ଏକ ବୃତ୍ତର ସେ ଭିନ୍ନପରିଧିରେ
ସବୁ ସତ୍ତ୍ୱେ ତୋଦେହ, ଖବରଶୁଣି ମନ ଜମାସ୍ଥିର ହେଉନାହିଁ ।
ମନ ହୁଏ ସବୁ ଛାଡ଼ି ତୋ ପାଖକୁ ଯାଆନ୍ତି ମୁଁ ଧାଇଁ

ତୁ'ତ କହୁ ଶିଖାଇଛୁ ମୋତେ ବାରମ୍ବାର ବେଦମନ୍ତ୍ରମଠ
ଶାସ୍ତ୍ରର ତପସ୍ୟାର ତୀର୍ଥଭୂମି, ଜୀବନ୍ତମନ୍ଦର
ଅସମ୍ଭବ ଅନୀତି ଓ ପୂଜାଉପଗ୍ରର
ପୂଜାତ କରୁଛୁ ମୁହଁ ଆସିଲ ଦିନରୁ ବଡ
କେବେହତ ହେଲାନାହିଁ ନିମିଷେ ମୁଁ ଥକ ପଡୁନାହିଁ ।।
ତଥାପି କେମିତି କହ ସମୟର ଚଲାପଥ ଜମା ସରୁ ନାହିଁ
ତୁ ତ ମୋତେ ଶିଖାଇଛୁ ଝିଅପଣ ପରଘରି
ଦୁଇକୂଳ ଦୀପ ଆଉ ଦୁଇ କୂଳ ଶକ୍ତି
ବଉଲୋ ! ଉଚ୍ଛୁଳେ ନଈ ଯନ୍ତ୍ରଣାର ମହୁଆ ଲହରୀ
କେକୂଳକୁ ହେଲନାହିଁ — ଘରେ ନାହିଁ ପଥ
ଦିନରାତି ବିରକ୍ତ ଓ ଉଦାସ ଉଦାସ ଭାବ ମୋ ଆଖିରୁ ଝରାଉଛି ଲୁହ !
ଟେଷ୍ଟ ପରୀକ୍ଷା ପୁଣି ପିଲାଙ୍କର ଆଗରେ ସେ
ଘରେ ପୁଣି କେହିନାହିଁ ଏକା ବଉଝିଅ
କେଉଁଠି ଖୁଜିବ ତାଙ୍କୁ ଏଠି କିଏ ଅଛି ଆପଣାର
କାହାକୁ ଗୁହାରିବ କହ ? କେଉଁଠାକୁ କେଉଁପାଦ
ଘୋଷାର ମୁଁ ଧାଇଁ ଯିବ, କାହାପାଇଁ ନିଗାଡ଼ିବ ଲୁହ
କାହାର ଆଖିର ଲୁହ ପୋଛିବ ମୁଁ କାହା ପାପୁଲିରେ
ସବୁରି ଭିତରେ ମୋତେ ଦିଶିଯାଏ ତୋ ବିକଳ ମୁହଁ
ଏମିତି ଲାଗୁଛି ବଡ ସବୁ କିଛି ଫିଙ୍ଗିଦେଇ
ତୋ ପାଖେ ଯାଆନ୍ତି ଧାଇଁ —
ତୋ କୋଳରେ ମଥା ଥାପି ନିଶ୍ୱାସ ନିଅନ୍ତି ସବୁ ଅଛି ସାନ୍ତ୍ୱନାରେ
ଲୁହଭିଜା ଏଇ ମୁହୂର୍ତ୍ତରେ—
ଦିଶିଯାଏ ଝାପ୍‌ସା ଝାପ୍‌ସା ମନ ଆଇନାରେ ମୋଝିଅର ମୁହଁ
ମୁଁ କାନ୍ଦୁଛି ସେ କାନ୍ଦିବ— କାନ୍ଦୁଥିବ ତାଝିଅ — ତାଝିଅ
ଏଇମିତି କାନ୍ଦୁଥିବେ ଯେତେସବୁ ପରଘରିଝିଅ ।
ଓଢଣାତ କାଟିନି କେହି ପଞ୍ଜୁରୀ କବାଟ ଖୋଲି
ଉଡ଼ିବା ଶକତି କିଏ କେତେ ବେଳେ କେଉଁପରି
ଏ ଦେହରୁ ନେଇଗଲା କହ ??



# ॥ ଏମିତକି ଘଟିବାର ଥିଲା ॥

ଏମିତି କେମିତି ହେଲା ??
ଏମିତି କି ଘଟିବାର ଥିଲା ......??
ବିଧିର ବିଧାନ କି ବା ଏମିତି
କାନ୍ଦିବାକୁ ଥିଲା ??
ବଉ ମୋର ଭୁଲିଗଲା ଶଙ୍ଖା ଓ ସିନ୍ଦୂର ଚିହ୍ନ
ମଶାଣୀର ଜୁଇ ଜଳି ଜଳି
ବାପା ମୋର ଜୀଅନ୍ତା ଶବଟି ପରି
ନିଶ୍ଚଳ ନୀରବ ନିର୍ବାକ
ବଉ ଏଇ ଭୁଲିଗଲା ଅଳ୍ପରୁ ଡେଙ୍ଗୁରା ବାଜେ
ଗୃହସ୍ଥାଳିରେ ଖଇ ଓ କଉଡ଼ି
ନାଲୁ, ଧଳୁ, ହୀରୁ ଆଉ ଶାନ୍ତି ଓ ସୁଷମା
ଧର୍ମଙ୍କର ଆଖିତଳେ ଲୁହର ଲହଡ଼ି
ସେମିତି ତ ଖୁବ୍ ବେଶୀ ବୟସ ହୋଇ ନଥିଲା
ମାଝ ଜୀବନ ବାଟରେ
ବାପାଙ୍କୁ ନିଃସଙ୍ଗ କରି/ଏ ଦୁନିଆଁ କରି ଶୋକମୟ
ବଉ ଗଲା ଚାଲି ଆର ପୁରରେ
ସାନଝିଅ ଗୋଡ଼ରୁ ତ ଅଳତା ଲିଭିନି
ତା ପୁଅଣି ଘର ଅସଜଡ଼ା
ଅଣ୍ଟିଆ ବଡ଼ ପୁଅ କୂଳରେ ଲାଗିନି
ସଂସାର ତା ହୋଇନି ସଜଡ଼ା
ଏ ଯାଏଁ ଖୋଜୁଛି ତୋର ସାନପୁଅ
ତୋ ପଣତ କାନି
ମୁହଁ ତାର ପୋଛିବ ସେ
ଜିଦ୍ ଧରି ଜମା ଖାଇବନି ।
ଦେଇନି ସଞ୍ଜ ସଳିତା କୁଳବଧୂ
ଚଉର ମୂଳରେ
କେମିତି ଘୋଟି ଆସିଲା ବିଦାୟର ରାତି
ଏଇ ଅବେଳରେ ॥



## ।। ସ୍ମୃତି ର ସହର ।।

'ଗମ୍ଭାରିଆ' ଗାଁ ମାଟି ମୋର
ପାଲଟିଲା ସ୍ମୃତିର ସହର
ମୋ ବନ୍ଧୁର ଛତା ଚାଲିଗଲା
ମୋ ଗାଁର ସପନ ସରିଲା ।।
ବନ୍ଧୁ ପାଇଁ ମନ ଝୁରିହୁଏ
ଛୁଟିକୁ ମୁଁ ଗାଁରେ ରହୁଥାଏ
ବସ୍‌ର ଶବ୍ଦ ଶୁଣିଲେ
ବୋଉ ହାତରୁ ବେଲା ଖସିପଡ଼େ
"ଟ୍ରେନ୍" ଆସିଲାଣି ପରା ଏଇ
କହି ଦେଇ ବନ୍ଧୁ ଆସେ ଧାଇଁ ।।
ଲକ୍ଷ୍ମୀ ଆଉ ନାରାୟଣ ପରି
ବନ୍ଧୁ ଆସେ ବାପା ପଛ ଧରି
ମୋ ପିଣ୍ଡାରେ ପ୍ରାଣ ଯାଏ ମରି
ସେ ଦୃଶ୍ୟ ମୋ 'କାଶୀ, ବାରଣାସୀ
ମୋ ଗାଁର ତୀର୍ଥ ହେଲା ଖାଲି
ମନ୍ଦିରରୁ ଦେବୀ ଗଲେ ଚାଲି ।।
ବନ୍ଧୁ ସ୍ମୃତି-ଶବ-ବୋହି ବୋହି
ଶିବ ସମ ବାପା ମୋ ଝୁରଇ
ବନ୍ଧୁ ମୋର ନାହିଁ ଆଉ ନାହିଁ
କହୁ ନାହିଁ ଗାଁ ସବୁ ଥାଇ ।।
ମୋ ଯିବାକୁ କେ ଦିନ ଗଣିବ
ମୋ ଆସିବା ପଥ କେ ଚାହିଁବ
କା'ର ହାତ ଅଙ୍କା ଝୋଟି ନେଇ
କା ହାତର ସଂଜ ଦୀପ ନେଇ
'ଗମ୍ଭାରିଆ' ମୁଖରିତ ହେବ
ଗମ୍ଭୀରରେ ଲୁହ ନଗାଡ଼ିବ ।।

ଯେଉଁଠାରେ ମୋ ବଉ ପାଳିଲା
ସରିଗଲା ସେଠି ମୋ ନିଶ୍ୱାସ
'ବୈଷ୍ଣବ ଧାଦା' ବଡ଼ ଖୁଡ଼ି
ସୁଶୀଳା, ସର, ଓ ଶାନ୍ତି ଖୁଡ଼ି
'ବଚ୍ଚ' ଆଉ ବନମାଳି, ଦାଦା
ପହଞ୍ଚିଲେ ନିଶ୍ଚେ ହେବେ ଗଦା
ପଦେ ଅଧେ ଦୁଃଖ ସୁଖ ହେବେ
ବାପା ମୋତେ ନୀରବେ ଚାହିଁବେ ।।

ଯଦି କେବେ ଯିବି ମୁଁ ଗାଁକୁ
ଦେଖିବି ମୁଁ ବଉ ସମାଧିକୁ
ତାର ପାଖେ ଡାକିବି ମୁଁ କାନ୍ଦି
ଧେତକ ମୋ ଗାଁ ମାଟି ମୋହ ।।
ଖାଁ ଖାଁ ହେଲା ଜନ୍ମ ମାଟି
ମୋ କଲିଜା କିଏ ନେଲା କାଟି
ମୋ ମାଟିରୁ ମାଆ ଚାଲିଗଲା
ମୋ ସ୍ମୃତିର ସହର ଜଳିଲା ।।



## ।। ଏକାନବେ...କୁ ।।

ଏକାନବେ ......!! ନୂଆବର୍ଷ ......!!
ତୁ ଏମିତି ଆସିଲୁ ଯେ
ତୋତେ ଆଜି କରୁଛି ମିଳନ୍ତିନ
ମୋ ବଉର କୋଳେଇରେ ବାନ୍ଧି ହୋଇ ଆସିଲୁ ତୁ...
ଲୁହର କୁଳ ଉଛୁଳା ନଈଟିଏ ହୋଇ
ସଞ୍ଜୀବନ ବର୍ଷ ଏମିତି କ'ଣ ଖୁବ୍ ବେଶୀ ସମସ୍ତ ଯେ
ସହି ପାରିଲେନି ।
ଫୁଲଟିକୁ ଜବରଦସ୍ତ ଝଡ଼େଇ ଦେଇ ପାଖୁଡ଼ାରେ ତାର
ଲେଖି ପଠାଇଲୁ ତୋ ଆସିବା ବାର୍ତ୍ତା ।
ଏକାନବେ......!! ନୂଆ ବର୍ଷ
ତୁ ତ ପାଳିଥିଲୁ କାହାପାଇଁ ଫୁଲର ଗଜରା
ପାର୍ଟି, ପିକ୍‌ନିକ୍, ଗ୍ରିଟିଂସ୍‌ର ତାଳେ ତାଳେ ହସର ଫୁଆରା
ବାଉକୁ ଛଡ଼େଇ ନେଇ ଆମଠାରୁ
ପାଳିଥିଲୁ ଲୁହର ଅସର
ଆମ ପାଇଁ ପକ୍ଷପାତ କଲୁ
ଆମେ ତୋର କଣ ଦୋଷ କଲୁ ?
ବଂଚଥିବା ଯାଏ ଆମେ/ଏ ଧରାକୁ ଆସୁଥିବୁ ନୂଆବର୍ଷ
କେତେ ସ୍ୱପ୍ନ କେତେଆଶା ନେଇ /କାହାକୁ ହସେଇ ପୁଣି
କନ୍ଦେଇ କାହାକୁ/ନୂଆବର୍ଷ......!!
ଏଥର ତୁ ଆସିବା ପୂର୍ବରୁ
ଯାହାକୁ ଆମଠାରୁ ନିର୍ମମରେ ନେଇଛୁ ଛଡ଼େଇ
ବାରମ୍ବାର ଅଗଣିତ ଥର/ଏ ଧରାକୁ ଆସିଥିବା ପରେ
ସେ ଦୁଃଖ କି ଆମ ମନୁ ପାରିବୁ ଭୁଲେଇ
ସେ ଅଞ୍ଚଳ ସ୍ମୃତିର ଧାସରେ
ବଂଚଥିବା ଯାଏ କଜଳରେ
ଆମ ଚନ୍ଦ୍ରମନ ଧବଳ ତୁଷାର ସ୍ପର୍ଶେ ଯାଉଥିବ
ଲୁହରେ ମିଳେଇ ।।



# ॥ ତୁ ଗଲାପରେ ॥

ମମତାର ମୂର୍ତ୍ତି ତୁହି ବଉ ଜେଜେ ତୁ   ଅମୃତ ଦାୟିନୀ
କା ପାଇଁ ତୁ ଚାଲିଗଲୁ ତୁଚ୍ଛ କରି  ସଂସାର ସରଣୀ
ଏମିତିତ କେହି ନାହିଁ ତୋ ହାତେ ଯେ ହୋଇନି ତୃପତ
କେବଳ ଆମରି ନୁହେଁ ସଭିଁଙ୍କର ଶରଧା ଭକତି ॥
କେତେ ତୋର ଚିନ୍ତାଥିଲା ପୁଅ ଝିଅ  ସ୍ୱାମୀର ସଂସାର
ତପସ୍ୟା ତୁ କରୁଥିଲୁ ଭୁଲି ନିଜ ସୁଖ ସମ୍ଭୋଗର
କେମିତି ଫେରେଇ ନେଇ ମୁହଁ ପୁଣି ଚାଲିଗଲୁ କହ
ନିଲୁ, ଢଲୁ, ଟୁଲୁଙ୍କର ଆଖିରେ ତ ଅପରନ୍ତ ଲୁହ ॥
ସତେ କ'ଣ ପୃଥିବୀକୁ ଆସିଥିଲୁ କଷ୍ଟକରି  ଏତକ ସମୟ
ଦୁଃଖୀର ଜୀବନ ତୋର ସଦାବେଳେ  ଖାଲି ଦୁଃଖ ମୟ
ନିଜପାଇଁ ଚିନ୍ତାତୋର ଥିଲାନାହିଁ କେବେ ବି ଜୀବନେ
ଧୂପ ସମ ଜଳି ଜଳି ମହକ ତୁ ବାଣ୍ଟିଗଲୁ ଶୟନେ ସ୍ୱପନେ ॥
ଅଝଟା ତୋ ବଡ଼ ପୁଅ କେମିତି ତୁ  ନିଧଡ଼କ ହେଲୁ
କାହାକୁ ଇସାରାଦେଇ କେଉଁ ଭରସାରେ  ଆଖିବୁଜି ଦେଲୁ
ଅଳି, ଅରଦଳି, କବା ବେଶୀକଲୁ  ସହି ନପାରିଲୁ
ରାଗ ଅଭିମାନ କହି ଆମକୁ ତୁ ଛାଡ଼ି ଚାଲିଗଲୁ
"ତୁ" ଗଲପରେ ବଉ ! ଆମସୁଖ  ସବୁ ଗଲାସରି
"ତୁ" ନାହିଁ ଭାବି ଦେଲେ ଝୋଟାଝୋଟା ଲୁହ ଯାଏଝରି ॥



# ॥ ସ୍ମୃତି ତର୍ପଣ ॥

ଯାହାପାଇଁ ଘରଦ୍ୱାର ପ୍ରିୟ ପରିଜନ
ଛାଡ଼ି ଦେଇ ବଉଳେ ! ତୁ ହେଲୁ ପର ଘରି
ଯାହାର ସଂସାର ହିତେ ତପସ୍ୱିନୀ ସାଜି
ସବୁ ଦୁଃଖ ହେଲୁ ତୁ ପାଶୋରି ॥
ଯାହା ପାଦ ପୂଜା କରି ଜୀବନର ନୈବେଦ୍ୟକୁ
ଯାହା ପାଶେ ଦେଇଥିଲୁ ବାଣ୍ଟି
ଆଜି ତାକୁ ପରକରି ଏ ଉତ୍ତର ବୟସରେ
କେମିତି ତୁ ଗଲୁ କହ ଛାଡ଼ି ॥
ମନେନାହିଁ ପଡ଼ୁନି ବଉ । ସିଏ ତୋତେ ତା ଜୀବନେ
କେତେବେଳେ ପରକା କରିଛି
ଟିକେ ବି କରିନି ଘୃଣା ମନ ଊଣା, ନିଜ ହାତେ
ତୋ'ର କେତେ ସେବା ବି କରିଛି ॥
ସିଏବି ତ କହୁଥିଲା ଥିବା ଯାଏ ତା ଦେହେ ଜୀବନ
ସେବା କେତେ କରିଥାନ୍ତା ଆନନ୍ଦିତ ମନେ
ତୁ ଖାଲି ବସିଥାନ୍ତୁ କାନ୍ଥରେ ପିଠିକୁ ଡେରି
ଦମ୍ଭତାର ରହିଥାନ୍ତା ବିକଳ ଜୀବନେ ॥
ଆଉ ପୁରୁ ତୋତେ କେଉଁ ଆଶା ଦେଖାଇଲା
ଏ ପୁରର ମାୟା ଗଲୁ ଭୁଲି
ଯିଏ ତୋତେ ଆପଣାର କରି ସବୁକୁ ପାଶୋରି ଥିଲା
ତାକୁ ତୁ ନେଲୁ କହ କିପରି ପାଶୋରି ॥
ଗୋଟିଏ ଛତାର ତଳେ ହଟେଁ ସିନା ଆସିଥିଲି

ଘନ ଘୋର ବରଷା ଝଡ଼ର
ଛତାଟି, କେ କୁଜ ଦେଲା ତୋତେ ନୂରେଲ ନେଲା
ବାପା ଆଜ ଏକୁଟିଆ ଓଦା ସରସର ।।
ଘଡ଼ିଏ ବିଳମ୍ବ ହେଲେ କେତେ ଅସ୍ଥ ବ୍ୟସ୍ତ ହେଉ
ସ୍କୁଲ ଫେରା-ବାଟ ଚାହିଁ ଚାହିଁ
ଏ ନିରାଟ ସାହାରାରେ ଏକୁଟିଆ ଛାଡ଼ିଦେଇ
କେମିତି ନିଶ୍ଚିନ୍ତ ହେଲୁ ଭାବି ପାରୁ ନାହିଁ ।।
ଭୁ ସିନା କପାଳ ବଉ ! ଶଙ୍ଖା ଓ ସିନ୍ଦୂର ନାଇ
ଚାଲିଗଲୁ ଅପୂରଣୀ ଡେଙ୍ଗୁର ବଜାଇ
ଥିବା ଯାଏଁ ଚନ୍ଦ୍ର ସୂର୍ଯ୍ୟ ଥିବାଯାଏଁ ଦେହରେ ଜୀବନ
ବାପା ମୋର ଝୁରୁଥିବେ ତୋ ଧୃତିର କେନ୍ଦର ବଜାଇ ।।



## ।। ମିନତି ।।

ମୋତେ କେହି ଆଂଜୁଳାଏ ଥଣ୍ଡା ପାଣି ଦିଅ
ଧୋଇବି ମୁଁ ମୋ ବାପାଙ୍କ ଅଚେତନ ମୁହଁ ।
ମୋ ବଉର କଳା ଶାଢ଼ୀ ପଣତ କାନିରେ
ପୋଛି ଦେବି ମୋ ବାପାଙ୍କ ଲୁହ ମୋ ହାତରେ ।
ଆଖି ଖୋଲି ବାପା ଯେବେ ପ୍ରଥମେ ଚାହିଁବେ
ଫୁଲଟି ଝରି ପଡୁଛି ତା ପାଇଁ ଝୁରିବେ ।
ଫୁଟା ଫୁଲ ବାସ୍ନା ଭରା ଦିନେତ ଝରିବ
ସେ ଝରା ଫୁଲର ସ୍ମୃତି ହୃଦୟ ମନ୍ଥିବ ।
କାହିଁକି ଯେ ଫୁଟେ ଫୁଲ କାହିଁକି ଯେ ଝରେ
ବଉଲୋ ! ତୋ ସ୍ମୃତି ଧୂପ ଜଳେ ଆମ ହୃଦୟ ମନ୍ଦରେ ।
ଆମେ ସବୁ ଶ୍ରେଷ୍ଠ ଶ୍ରେଷ୍ଠ କଥା ଯା' ରହିଛି
ବାପାଙ୍କ ଲୁହରେ ଲୁହ ମିଶାଇ ଝୁରୁଛି ।
କେତେ ସ୍ୱପ୍ନ ସମ୍ଭାବନା ଭରି ଅଛି ଅଫୁଟା କଢ଼ରେ
ତାକୁ ହିଁ ପାଥେୟ କରି ବାପା ତୁମେ ବଂଚି ରୁହ
ଆମ ପୃଥିବୀରେ ।।



# ।। ହେ ଈଶ୍ୱର ।।

ବଂଚିଥିଲା ବେଳେ ବଉ ମୋର
ମରୁବେଳେ କହେ ହେ ଈଶ୍ୱର
ଏକ ନ୍ୟାୟ ଏକ ଅବିଚାର
ଆମ ପାଇଁ ସର୍ବଦା ନିଷ୍ଠୁର
ଆମେ କିବା ଅସ୍ତ୍ରଶସ୍ତ୍ର ଧରେଁ
ଦୁଃଖ ରାଜ୍ୟ ପାଳିବାର ନୁହେଁ
ପ୍ରଭୁ ତୁମେ ହୁଅ ବଡ଼ ପଣେ
ବଉ ମୋର ଗଲା ଅଭିମାନେ
କରିଥିଲେ 'ବାପା' କେଉଁ ଦୋଷ
ସେଥିପାଇଁ ପ୍ରଭୁ ହେଲ ରୋଷ
ବାଲ୍ୟକାଳେ ପିତୃ ମାତୃ ହାରି
ବଂଚିଥିଲେ ତୁମ ଆଶ୍ରା କରି
ଯୌବନରେ ଦେଲ ଭ୍ରାତୃ କଷ୍ଟ
ତହୁଁ ବଳି ପୁଣି ପୁତ୍ର କଷ୍ଟ
ବାର୍ଦ୍ଧକ୍ୟରେ କଲ ପତ୍ନୀ ହରା
ଏ ଦୁଃଖ ଯେ ସବୁଠୁ ବଳିଲା
କାହାପାଇଁ ଝରଣା ସାଜିଲ
କାହାପାଇଁ ସମୁଦ୍ରର ଜଳ
ସାରାଦିନ ତୁମ ଆଶ୍ରା କରି
ସତ୍ୟ ନ୍ୟାୟ ବାଟେ ଉଠି ପଡ଼ି
ଚାଲିବାର ଏଇ ନାମ ନେଲ
ଜୀବନଟା କଲ ଧଲ କଲ ।।

ଆଜି କବା ଅଘଟଣ ଅଛି
ଘଟିବାରେ ବିଳମ୍ବ ରହୁଛି
ହେ ଈଶ୍ବର ପଛେ କବା ଅଛ
ପ୍ରଭୁ ହୋଇ ଅନ୍ୟାୟ କରୁଛ
ରାତି ପରେ ଦିନ ଭିଆଇଛ
ଦୁଃଖ ପରେ ସୁଖ ତିଆରିଛ
କାହାପାଇଁ ଓଲଟ ପତର
କାହା ଭାଗ୍ୟ କେବଳ ପଥର
ମୁହିଁ ପୋଡି ଯେ ସବୁ ସହୁଛି
ତା କପାଳ ସର୍ବଦା ଫାଟୁଛି
ହେ ଇଶ୍ବର ଏ କି ଅବିଚାର
ତୁମପାଇଁ ନାହିଁ କି ବିଚାର ?



# ॥ ଥରୁଟେ ହେଲେ ତୁ ଆ......

ଥରୁଟିଏ ହେଲେ ସପନେ ବଉଲୋ 'ଝୁଲିଆ' ପାଖକୁ ଆସି
ଶେଷଥର ପାଇଁ ତା ଆଖିରୁ ଲୁହ ନେଇଯା ତୋ ହାତେ ପୋଛି
କହିଯାଆ ବଉ ! କି ଲାଭ ଝୁରିଲେ ସବୁ ଯିବେ ଟଘ ଦିନେ
ସବା ସାନପୁଅ ଗେଲ ବସରର ତୋ ପାଇଁ ଝୁରୁଛି ମନେ ॥
ତୋ ସ୍ନେହ ଅମୃତ ସଭିଏଁ ପାଇଲେ ଅଳପ ବହୁତ କରି
ସବୁଠୁ କମିଲା ଭାଗ୍ୟଟି ତା'ରଲେ ଯେ ପାଇଁ କାନ୍ଦୁଛି ଝୁରି
ସରିନି ତା ପଢା ପାଇନି ସେ ବଳ ବାଟ ଚଳିବାର ପାଇଁ
କୋଡ଼ ପୋଛୁ ପୋଛୁ ଅଝଟା ପୁଅକୁ କେମିତି ଗଲୁଲୋ ଛଡ଼ି ॥
କମ୍ପା ନିଧଡ଼କ ହେଲୁତୁ ବଉଲୋ ! କା' ତୋର ମୋତେ ଦେଇ
ତୋ ପରି ଅମୃତ ମୁଁ କି ଝରାଇବି ତା' ଚଲା ପଥରେ ଯାଇ
ନିଜକୁ ନିଜେ ମୁଁ ବୁଝେଇ ପାରୁନି ତାକୁ କିବା ବୁଝାଇବି
ଝୁଲିଆର ସେହି ଛେଉଣ୍ଡ ମୁହଁକୁ କେମିତି ଚାହିଁ ରହିବି ॥
ତା ଶୁଖିଲା ମୁହଁ ଦେଖିଲେ ବଉଲୋ ଛାତି ମୋ ଯାଉଛି ଫାଟି
ତୁ ଯିବା ଦିନରୁ ତୋହରି ଚିନ୍ତାରେ ହେଉଛି ନିତି ସେ ଘାଣ୍ଟି ॥
ଥରୁଟେ ହେଲେ ତୁ ସପନେ ବଉଲୋ ! ଝୁଲିଆ ପାଖକୁ ଆ···
ତୋ କାନ୍ଦୁରା ପୁଅ ପିଠି ଥାପୁଡ଼େଇ ବୋଧ ଟିକେ ନେଇ ଯାଆ ॥



## ॥ ତୁମକୁ ତ ବଂଚିବାକୁ ହେବ ॥

ଏଇ ଦେଖ ବାପା ! ରାସ୍ତା କଡ଼ରେ ଠିଆ ହୋଇ ଅଛି ଶୁଷ୍କ ବରଗଛ
ସେଠି ଟିକେ ଛାଇ ନାହିଁ ନା ଅଛି ଫଳ ଫୁଲ ପତ୍ର
ଏଇ ଯେ ହେଉଛି ଠିଆ ଚେର ଭିଡ଼ି ମାଟି କ୍ଷୟ ରୋକ
ତୁମେ କିଆଁ ତେବେ କୁହ ଏ ଦୁଃଖରେ ପଡ଼ୁଅଛ ଥକ ॥
ଅଭିଶପ୍ତା ଅପସରି ଯେ ଦେବ ଲୋକୁ ଆସିଥିଲା ଧାଇଁ
କାନ୍ଦି କାନ୍ଦି ଗଲା ଶେଷେ ସଭିଙ୍କୁ ବି କନ୍ଦାଇ କନ୍ଦାଇ ॥
ମାଆ ପରି ସାହାଥିଲା ଭଗ୍ନୀ ପରି ଆହା କଲା ସାଥିପରି ସାଥିଟିଏ ଥିଲା
ଧୂପସମ ଜଳିଗଲା ପତ୍ନୀହୋଇ ତା ବିଦାୟ ଘଣ୍ଟି ବାଜିଗଲା
ମାତୃହୀନ ଛୁଆଙ୍କର କେତେ ଦୁଃଖ ନିଜେତ ଜାଣିଛ
ତୁମ ବିନା ଆମ ପାଇଁ କିଏ ଅଛି ନିଜେତ ବୁଝିଛ ॥
ଆମେ ମଲୁ ପୁଅ ଝିଅ ଆମ ଆଖି କିଏ ସେ ପୋଛିବ
ତା ସ୍ମୃତିରେ ଲୁହ ଢାଳି ବାପା ଯଦି ଏମିତି ଝୁରିବ
ନିଜକୁ ନିଜେ ବୁଝାଅ ତନୁ କ୍ଷୀଣ କରନାହିଁ ତୁମେ ବଂଚିରୁହ
ବାପା ତୁମେ ଛାତିକୁ ପଥର କରି ସେ ରକ୍ତାକ୍ତ ସ୍ମୃତି ଭୁଲି ଯାଅ ॥
ବଉର ପଣତ କାନି ବାନ୍ଧି ନେଲା ଆମଠୁଁ ଛଡ଼େଇ
ଆମ ଲୁହ ପୋଛିବାକୁ ଖଦଡ଼ ଗାମୁଛା ତୁମେ ଦିଅତ ବଢାଇ ॥
ତୁମକୁତ ବଂଚିବାକୁ ହେବ ବାପା
ଆମ ପାଇଁ ଲୁହ ପିଇ ପିଇ
ବଉ ତ ପାଲଟିଗଲା ଆକାଶର ତାରା
ତୁମ ପାଖେ ତା'ର କା' ଦେଇ ॥

## ।। ମା' ଚେତଉଣ୍ଡି ମାନଙ୍କୁ ।।

ରଜୀବ, ମିଶେଷ୍ ପଟ୍ଟନାୟକ, ଅଳକାମ୍ୟାଡ଼ାମ୍
ଯେତେକ ମା' ଚେତଉଣ୍ଡି ସରଚଳ ମୋର-
ତୁମ ସଭିଙ୍କର ପାଖେ ଏକ ଅନୁନୟ-
ମୋତେ ସେହି ବାଟ ଟିକେ ଦିଅନ୍ତ ବତାଇ
ମୋତେ ସେ ଗାୟତ୍ରୀ ମନ୍ତ୍ର ଦିଅନ୍ତ ଶିଖାଇ ।।
ଯାହାକୁ ମୁଁ ଜପି ଜପି ମୋ ବଉର ଶୋକ କୁ ଭୁଲିବି
ବଉ ମୋର ଗୁଲିଗଲା ଅଗୁନକ ଅବେଳରେ
ତା ସ୍ମୃତିର ରକ୍ତ ନଦୀ କୂଳ ଲଙ୍ଘୁଛି
କାହିଁଯେ, 'କ' ସାନ୍ତ୍ୱନା ଲକ୍ଷଣର ଶବ
ସ୍ମୃତି ନଦୀ ପାର ପାଇଁ ବାଟକୁ ଝୁରୁଛି ।।
କେମିତି ଯେ ତୁମେ ସବୁ ସେ ଶୋକାର୍ତ୍ତ ମୁହୂର୍ତ୍ତ ଭୁଲିଲ
ବଉ ନାହିଁ ଆସିବନ ଗଲା ସିଏ ସବୁ ଦିନ ପାଇଁ
ସେ ସ୍ୱୀକୃତି କେମିତି ସହିଲ ।।
ମୋତେ ସେହି ସ୍ୱପ୍ନ ଟିକେ ଦିଅ
ମୁଁ ତ ଭୁଲି ପାରୁନ ମୋ ବଉର ଲୁହ ବୋଳା ମୁହଁ
ଲାଗୁଛି ଯେମିତି ନାହିଁ ପାଦତଳେ ମୁଠେ ମାଟି
ମୁଣ୍ଡ ପରେ ଚେନାଏ ଆକାଶ
ସତେ କ'ଣ ବୋଉ ମୋର ଗୁଲିଗଲା ଆରପୁରେ
ଆଉ ଜମା ଶୁଣିବନି ହେଉନି ବିଶ୍ୱାସ ।।
ମୋତେ କାଲେ ବଂଚବାକୁ ହେବ/ମୋ ସ୍ୱାମୀର ଘର ଓ ସଂସାର
ଶଂଖା ଓ ସିନ୍ଦୂର ଚିହ୍ନ ଝିଅ ମୋର ଯିବ ଶାଶୁଘର
ତା' ପାଇଁ ସଜାଡ଼ିବ ଘର-
ଅଝଟିଆ ପୁଅ ମୋର ବଉଖିଆ କାଳିଆ ଠାକୁର
ହାତଧରି ଚଲାଇବ ପାଦ ତା'ର ହୋଇ ନାହିଁ ସ୍ଥିର
ମୋ ବାପାଙ୍କୁ ମୋ ବଉର ଯିବା ଦୁଃଖ ମୁହିଁ ଭୁଲାଇବି

ମୋ ଛେଉଣ୍ଡ ଘର ଭଉଣୀଙ୍କ ଲୁହ ବୋଳା ମୁହଁ ମୁଁ ପୋଛିବ
ପରତେ ହେଉନ ମୋର ବଉ ସତେ ଚାଲିଗଲା ବୋଲି
ବଉ ନାହିଁ ଭାବିଦେଲେ ମୋ ଆଖିରୁ ଲୁହ ଯାଏ ଝରି ॥
ମଶାଣୀର ରଙ୍ଗ ନିଆଁ ଆଖିରେ ନାଚୁଛି
ଛାତିରୁ ଅଠଡ଼ା ଖସେ ଛଣି ପାଖ କଟକଟ୍
ଯେତେ ଯାହା କଲେ ବି ତ ଭୁଲି ନ ହେଉଛି ॥
ମୋ ଆଖିରୁ ଅବିରତ ଲୋତକ ଝରୁଛି
କେମିତି ଏ ରକ୍ତଝରା ମୁହୂର୍ତ୍ତକୁ ଡେଇଁଗଲ ବୁଦ୍ଧ
କେଉଁ ମନ୍ତ୍ର ଜପିଲେ ଯେ ଥମିଯିବ ମୋ ଛାତିର କୋହ ॥
ହେ ! ମୋର ବନ୍ଧୁ ପ୍ରିୟଜନ
କେମିତି ମୁଁ ଏ ଶୋକାର୍ତ୍ତ ସମୟ ସାରିବି
ମୋ ପୃଥିବୀ ମୋତେ ଡାକେ-
ପଦଟିଏ ହେଉ ପଛେ ସେ ମନ୍ତ୍ର ଶିଖାଅ ମୋତେ-
ଜପା ମାଳୀ କଟିତାକୁ ଚୁମ ପରି ଲୁହ ପିଇ
ଦଣ୍ଡେ ମୁଁ ହସିବି ... ... ॥



## ।। ବଉ ।।

ବଉ ଲୋ !
ତୁ ମୋର ସକଳ ତୀର୍ଥ, ତୁ ମୋର ବଦ୍ରିକା
ମୋ ପ୍ରାଣ ଭାରତ ବର୍ଷ, ସ୍ୱପ୍ନର ଓଡ଼ିଶା
ତୁ ତ ମୋର ପୂଣ୍ୟ ନୀଳାଚଳ
ଫର ଫର ଉଡ଼େ ତୋର ପଣତର ସ୍ନେହ ବୋଳା ନେତ
ତୋ ହୃଦୟ ଶରଧା ବାଲିରେ
ଗଡ଼ି ଗଡ଼ି ପ୍ରାଣ ମୋର ହେଉଥିଲା ଶାନ୍ତ ।।
ବୁକୁର ଅମୃତ ତୋର ପୂଣ୍ୟ ଗଙ୍ଗାଜଳ
ସ୍ନାନ କରି ତନୁ ମନ ସକଳ ପବିତ୍ର
ତୋର ହାତ ରନ୍ଧା...
ପ୍ରଭୁଙ୍କର ଅମୃତ ଅଭଡ଼ା ...
ତୋ ହାତର ମାଣବସା ମଣ୍ଡାପିଠା ବାସ୍ନା ।।
ଶୁଖିଲା ମହାଦ
ବଉଲୋ ! ତୁ ଲକ୍ଷ୍ମୀ ପରି ଥିଲୁ ଏ ଘରର
ଋଦ୍ଧି କରି କାହିଁ ଗଲୁ ଶୂନ୍ୟ ଏ ମନ୍ଦର
ତୁ ଗଲାପରେ—
ବିଧବାର ସୁନ୍ଥା ପରି ଖାଁ ଖାଁ ଏ ଜୀବନ ରାସ୍ତା
ସବୁ ଶୂନ୍ୟ ମହାଶୂନ୍ୟ ଶୂନ୍ୟତାର ଅଗଣିତ ଗୁଈ
ଦେବୀ ପରି ଜଳ ଜଳ ମୂର୍ତ୍ତି ତୋର ଆଉ ଦିଶୁନାହିଁ ।।
ସ୍ନେହ ବୋଳା ଟୁନି ଟୁନି ଡାକ ଆଉ ଶୁଭୁନାହିଁ
ବଉଲୋ ତୁ ହଜିଗଲୁ କାହିଁ ??
ବେଦନାର ବଡ଼ ଦାଣ୍ଡେ ତୋ ସ୍ନେହ କୈବଲ୍ୟ ଖୋଜି
ଆମେ ସବୁ ପୁଅ ଝିଅ ଅଧିଆ ବସିଛୁ
ଜୀଅନ୍ତା ଶବଟି ପରି ଅଧା ଜୀଇଁ ଅଧା ମରି
ତୋ ସ୍ମୃତି ନିର୍ମାଲ୍ୟ ପାଇ -
ଜୀବନକୁ ଲହୁ ଲୁହେ ଆମେ ବଞ୍ଚାଇଛୁ
ତୋ ହାତ ବାକ୍ସ ସାଇତା ଖୁଚୁରା ପଇସା ପରି
ଏ ଶୋକାର୍ତ୍ତ ସମୟକୁ ଧୀରେ ଧୀରେ ଖରଚ କରୁଛୁ ।।



# ॥ ଶେଷରେ ଏତିକି ॥

ହଁ ମୁଁ ମାନୁଛି କେହି ରହି ନେଇ
ସବୁ ଯିବେ ଆଗ ପଛ
ଶେଷରେ ଏତିକ ଥରୁଟିଏ ବଉ !
ସମନେ ଦେଲେ ତୁ ଆସ ॥
ସତକରେ ଆସି ବାମ୍ବାଙ୍କ ଆଖିରୁ
ଲୁହ ଥରେ ଦେ ପୋଛି
ବୁଝାଇ ସୁଝାଇ କହିଯା ତାଙ୍କୁ
ଧଇର୍ଯ୍ୟ ଧଇବେ ବସି ॥
ପ୍ରଜା ହିତେ ରାମ ସୀତାଙ୍କୁ ତେଜିଲେ
ଲୁହ ପୋଛି ବନ ଗଲେ
ଆମହିତ ପାଇଁ ବାପା ରହିଥାନ୍ତୁ
ଲୁହରେ ମାଜ ତୋ ସ୍ମୃତି ॥
ସ୍ମୃତି ସ୍ୱର୍ଣ୍ଣ ସୀତା ପାଶରେ ବସାଇ
କର୍ତ୍ତବ୍ୟର ଯଜ୍ଞ ସ୍ଥଳେ
ତୋ କରିବା କାମ ସେ ସବୁ କରିବେ
ଦେଖିବେ ତୋ ପାଇଁ ଡୋଳେ ॥
ଜୀବନରୁ ବଳ ମୋତେ ଭଲ ପାଉ
କେବଳ ସେଇଥି ପାଇଁ
ଶେଷରେ ଏତିକ କହୁଛି ବଉଲୋ !
ଦୁଃଖ ତୁ କରିବୁ ନାହିଁ ॥
ଯେ ଦେଶେ ଯାଇଛୁ ସେ ଦେଶେ ବଉଲୋ !
ଶାନ୍ତିରେ ଥା' ତୁ ରହି

ହେଲେ ତୁ ବାପାଙ୍କୁ ଡକାଇ ନେବୁନ
ଆମକୁ ଶୋକେ ଭସାଇ ।।
ବଂଚଥିଲା ବେଳେ ନିମିଷକ ପାଇଁ
କରିନ ବାପାଙ୍କୁ ପର
ଏବେ କାଳେ ନେବୁ ପାଖକୁ ଡାକିବୁ
ସେ ପାଇଁ ଆମର ଡର ।।
'ବାପା' ହେବେ 'ବାପା' ହେବେ ପୁଣି 'ବଉ'
ଚାଲିଆ ବୁଝିବା ପାଇଁ
ତୋର ଯିବାପରେ ଆମର ଜୀବନ
ଜଳି ପୋଡିଗଲା ହାଏ ।।
କେତେ ଭଲ ପାଉ ସଭିଁଙ୍କୁ ପରତୁ
ସଭିଁଙ୍କର କା' ନେଇ
ସରଗ ପୁରକୁ ଚାଲିଗଲୁ କାଳେ
ଭଲ ଯାଗା ନେବା ପାଇଁ ।।
ଆଗୁଆ ଯାଇଛୁ ମରତ ଉଜାଡ଼ି
ସରଗେ ପଣତ ପାରି
ତୋ ପାଖରେ 'ବଉ' ଯାଗା ରଖିଥିବୁ
ସଭିଁଙ୍କ ପାଇଁ ଆମରି ।।



# ॥ କୋହମୟ ଭାବବିନ୍ୟାସ ॥

'ସ୍ନେହ··· ମମତା ଓ କରୁଣାର ଶ୍ରାବଣୀ ଝରଣା ହେଉଛି ମା' । ମା'ର ଡାକରେ ଦୁଃଖଶୋକ ଭୟ ଉଭେଇ ଯାଏ ମନରୁ । ମା'ର ପଣତ କାନିରେ ମୁହଁ ପୋଛି ଦେଲେ ମିଳେ ପରମ- ଉଲ୍ଲାସ । ମା ଚାଲିଗଲେ ସବୁଦିନ ପାଇଁ ହଜିଯାଏ··· ସ୍ନେହରେ ଜୁଡ଼ୁବୁଡ଼ୁ ନିଜର ଠିକଣା । ଏମିତି ସୁଲେଖିକା ଶ୍ରୀମତୀ ସବିତାରାଣୀଙ୍କ ମା ଚାଲିଗଲେ ଚୁପ୍‌ଚାପ୍ ··ଦୂରକୁ ବହୁଦୂରକୁ- ଅମୃତ ପଥକୁ । ସ୍ୱାମୀ ସନ୍ତାନ ସନ୍ତତି ଓ ପରିଜନଙ୍କ ହୃଦୟରେ କରୁଣରେଖା ଅଙ୍କିତ କରି ।

ମାତୃହରା ଶ୍ରୀମତୀ ସବିତାରାଣୀଙ୍କ ଆଖିରୁ ଝରିପଡୁଛି ଅବିଶ୍ରାନ୍ତ ଲୁହ ପୁଣି ବୁକୁଫଟା କୋହ ଉଚ୍ଛୁଳି ପଡୁଛି ହୃଦୟରେ । ସେହି କୋହମୟ ଭାବ ଉଚ୍ଛ୍ୱାସ ଛଳଛଳ ସାବଲୀଳ ଭାଷାରେ ଉଦ୍ବେଳିତ ହୋଇଛି । ପରକ୍ଷଣରେ ସେହିଦୁଃଖଦ ଭାବକୁ ଶ୍ରୀମତୀ ସବିତାରାଣୀ ବ୍ୟକ୍ତ କରିଛନ୍ତି ଧ୍ୱନିମାନ-କାବ୍ୟ କଳାରେ । ଲେଖିକାଙ୍କର ଅପାଶୋରା ମାତୃସ୍ନେହ ସଞ୍ଜୀବିତ ହୋଇଛି ସମ୍ବେଦନ ମନ୍ତ୍ରସୂତାରେ ପୁଣି ଲୋତକସିକ୍ତ ଭାବବିନ୍ୟାସରେ ।

ଏଇ ସମୟରେ ଲେଖିକାଙ୍କର ଏକ କୋମଳତନ୍ତ୍ରୀ-ଲୋଳିତ ଦୁର୍ବାଦଳ ପରି ଛନଛନ ଉକ୍ତିକୁ ଉପସ୍ଥାପିତ କରିବାକୁ ମୁଁ ଶ୍ରେୟ ମଣୁଅଛି । ବୋଉ ଭୁଲି ଗଲାପରେ ··· ବିଧବାର ସୁନ୍ଦାରେ ଖାଁ ଖାଁ ଏ ଜୀବନ ରାସ୍ତା, ସବୁଶୂନ୍ୟ ମହାଶୂନ୍ୟ ଶୂନ୍ୟତାର ଝଟଣିତ ସ୍ମୃତି, ଦେବୀପରି ଜଳଜଳ ମୂର୍ତ୍ତି ତୋ'ର ଆଉ ଦିଶୁନାହିଁ, ସ୍ନେହବୋଳା ଧନଧନ ଡାକ ଆଉ ଶୁଭୁନାହିଁ, ବୋଉମୋର ହଜିଗଲୁ କାହିଁ ???

ଏଇଭଳି ଅନେକ ହୃଦୟସ୍ପର୍ଶୀ ପଦ ଆତ୍ମ—କୈନ୍ଦ୍ରିକ ପରିଧିରୁ ମୁକ୍ତ ହୋଇ ମା ହେଉଣ୍ଡର ମନରେ ଓ ପ୍ରାଣରେ ଗୁଞ୍ଜରିଉଠେ । ସମସ୍ତ କବିତାକୁ ଆଦରି ନିଏ ନିଜର କରି । ଏସ୍ଥଳେ କବିକୃତି ହୁଏ ସଫଳ ଓ ସଂପୃକ୍ତ । ଲେଖିକାଙ୍କର ମନନଶୀଳ ଭାବରାଶିରେ ମୃତ୍ୟୁ ଚେତନା ମଧ୍ୟ ସଂଜୀବିତ । ଯାହାଫଳରେ ପାଠକର ମନ ମୁହ୍ୟମାଣ ହୋଇଯାଏ କାବ୍ୟ ଆସ୍ୱାଦନରେ ।

ନୂତନ ରସକଳ୍ପ ଶୋଭିତ ଭାବବିନ୍ୟାସ ତଥା ପ୍ରକାଶ ଭଂଗୀଯୋଗୁଁ ଶ୍ରୀମତୀ ସବିତାରାଣୀ ସମସାମୟିକ କବିମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ଆସନରେ ଅଳଂକୃତା, ଏକଥା ମୁଁ ସ୍ୱୀକାର କରୁଛି ମୋର କାବ୍ୟିକ ବିଚାରରେ 'ଲୁହର ନୈବେଦ୍ୟ' ଜନମାନସରେ ସୃଷ୍ଟି କରିବ କୋହମୟ ଭାବଉଚ୍ଛ୍ୱାସ ଓ କାବ୍ୟିକ ଉଲ୍ଲାସ, ଏ ସଂପର୍କରେ ମୁଁ ନିଶ୍ଚିନ୍ତ ।

ତା ୨୧।୩।୧୯୯୧ **କବିବର ପରିଡା**

ଅକାଳ ମାତୃ ବିୟୋଗରେ ଶୋକାକୁଳା ଶ୍ରୀମତୀ ସବିତାରାଣୀ ବେହେରା ତାଙ୍କ ଅନ୍ତରାତ୍ମାର ବେଦନାକୁ ପ୍ରକାଶ କରିଛନ୍ତି ଏହି 'ଲୁହର ନୈବେଦ୍ୟ' କବିତାଗୁଚ୍ଛରେ । ଆଧାତ୍ମବାଦର ବିଚାରରେ କାହାର ମୃତ୍ୟୁ ପାଇଁ ସର୍ବଦା ଅଧୀର ହେଲେ ମୃତ ଆତ୍ମା ଆକର୍ଷିତ ହୋଇ କ୍ଲେଶପାଏ, ମୁକ୍ତିପାଇ ପାରେନା । କିନ୍ତୁ ଜାଗତିକ ମଣିଷ ଆଧାତ୍ମବାଦର ଏ ପ୍ରହେଳିକାକୁ ସ୍ୱୀକାର କରି ପାରେନା ସବୁବେଳେ । ତେଣୁ ସବିତାରାଣୀ ବେହେରା ତାଙ୍କ କବି ଜୀବନର ସମସ୍ତ ଭାବ ନିର୍ଯ୍ୟାସ ବାଢ଼ି ନିଜ ଜନ୍ମଦାତ୍ରୀଙ୍କ ପାଇଁ ଯେଉଁ ଟୋପା ଟୋପା ଲୁହ ଝରେଇଛନ୍ତି ଏ କବିତା ଗୁଚ୍ଛରେ ତାହା ଆଧ୍ୟାତ୍ମିକ ବିଚାରରେ ମାୟାମୋହ ହୋଇପାରେ କିନ୍ତୁ କାୟାଧାରୀ ମଣିଷ ପକ୍ଷରେ ନିଚ୍ଛକ ବାସ୍ତବତା । ଏହି କବିତା ଗୁଡ଼ିକର ପରିପ୍ରକାଶ ସାର୍ବଜନୀନ ହେବା ସଙ୍ଗେ ସଙ୍ଗେ କବିତ୍ୱପୂର୍ଣ୍ଣ ଓ ହୃଦୟ ସ୍ପର୍ଶୀ ହୋଇ ପାରିଛି ଏହା ସ୍ୱୀକାର ଯୋଗ୍ୟ ।

* **ସୁଷମାଦେବୀ ମହାପାତ୍ର**
ଏ/୨୧୬, ସେକ୍ଟର - ୪, ରାଉରକେଲା

ମମତାମୟୀ, କରୁଣାମୟୀ ମା'ର ମମତାର ମୂଲ୍ୟ କିଏ ବା କଳନା କରିପାରିବ ? ମାତୃହରା ମନ ଅହରହ ଖୋଜି ବସେ ସେ ଅମୂଲ୍ୟ ରତ୍ନଟିକୁ । 'ଲୁହର ନୈବେଦ୍ୟ' ସେହି ମା' ପାଇଁ ଉତ୍ସର୍ଗୀକୃତ କବି ସବିତାରାଣୀ ବେହେରାଙ୍କର ଅଶ୍ରୁଭିଜା ସ୍ମୃତି ତର୍ପଣର ଅଶ୍ରୁଳ ଇସ୍ତାହାର । ଏହି କବିତା ଗୁଡ଼ିକ ମଧ୍ୟରେ କେତେବେଳେ ଲୁହ ଟପ୍ ଟପ୍ ହୋଇ ଝରିପଡ଼ୁଛି କେତେ ଅନ୍ତର୍ଦାହର ଶୋକୋଚ୍ଛ୍ୱାସ ଅନୁରଣିତ ହୋଇଛି ତାହା ଖାଲି ଅନୁଭବରେ ସାଉଁଟି ନେବାକଥା । କବିତା ଗୁଚ୍ଛଟିର ପ୍ରତ୍ୟେକଟି ପଂକ୍ତି କବିଙ୍କର ସ୍ୱତଃସ୍ଫୂର୍ତ୍ତ ଓ ଏକାନ୍ତ ଆପଣାର । ଆଜି ଯେ କବି ଏହାକୁ ଆମ ମାନଙ୍କ ମଧ୍ୟରେ ବାଣ୍ଟି ଦେଇ ପାରିଛନ୍ତି ତାହା ତାଙ୍କ ହୃଦୟର ଉଦାରତା ଓ ସାର୍ବଜନୀନ ଭାବର ପରିଚୟ ଦିଏ । ପ୍ରଭୁଙ୍କ ପାଖରେ ତାଙ୍କ ମା'ର ଆତ୍ମାର ସଦ୍‌ଗତି କାମନା କରି ରହୁଛି !

* **ସୀମା ମିଶ୍ର**
ସି/୩, ସେକ୍ଟର - ୧୯, ରାଉରକେଲା

## ଶେଷ ସ୍ୱୀକାରୋକ୍ତି

ଆଭିଧାନିକ ଶବ୍ଦ 'ବୋଉ' ପରିବର୍ତ୍ତେ ବାଲେଶ୍ୱର ଜିଲ୍ଲାର ଗାଁ ଗହଳରେ 'ବଉ' ଶବ୍ଦ ଆଞ୍ଚଳିକ ଭାଷା ଭାବେ ବ୍ୟବହୃତ । ଶବ୍ଦ ଉଚ୍ଚାରଣ କରି ଶିଖିବା ଦିନରୁ ଯେଉଁ ସ୍ନେହମୟୀ ଜନନୀକୁ 'ବଉ' ବୋଲି ସାରାଜୀବନ ଡାକି ଆସିଲି, ତା'ର ବିୟୋଗ ପରେ ତାକୁ ପୁଣି ସେହି ଆଭିଧାନିକ 'ବୋଉ' ଶବ୍ଦରେ କିପରି ବା ସମ୍ବୋଧିତ କରିବି ? ତେଣୁ 'ଲୁହର ନୈବେଦ୍ୟ'ର ପୃଷ୍ଠାରେ ପୃଷ୍ଠାରେ 'ବୋଉ' ପରିବର୍ତ୍ତେ 'ବଉ' ଶବ୍ଦ ହିଁ ଝରି ପଡ଼ୁଛି ସ୍ୱତଃସ୍ଫୂର୍ତ୍ତ ହୋଇ ।

* **କବି**